# ଜବାହରଙ୍କ ଜୀବନ-ଜ୍ୟୋତି




ପବ୍ଲିକେଶନ୍ସ ଡିଭିଜନ



ଜବାହରଲାଲ ନେହରୁ ଥିଲେ ଆମ ପୁରୁଷର ଶ୍ରେଷ୍ଠତମ ମାନବମାନଙ୍କ ମଧ୍ୟରେ ଅନ୍ୟତମ । ମହାତ୍ମା ଗାନ୍ଧୀଙ୍କୁ ବାଦଦେଲେ, ସେ ଥିଲେ ଆମ ଦେଶର ସ୍ୱାଧୀନତା ଆନ୍ଦୋଳନର ତୁଙ୍ଗତମ ନେତା । ଯୌବନର ଆଦ୍ୟରେ ସେ କାଳର ବହୁ ଦେଶପ୍ରେମୀ ଭାରତୀୟଙ୍କ ପରି ଜୀବନର ସୁଖସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଜାତିର ସେବା ନିମିତ୍ତ କର୍ମ ଓ କଠୋରତାର ଜୀବନକୁ ସେ ବରି ନେଇଥିଲେ । ୧୯୪୭ ମସିହାରେ ସ୍ୱାଧୀନତା ଅର୍ଜିତ ହେଲାବେଳେ କୃତଜ୍ଞ ଜାତି ତାଙ୍କୁ ପ୍ରଧାନମନ୍ତ୍ରୀ ଆସନରେ ପ୍ରତିଷ୍ଠିତ କଲା । ୧୯୬୪ ମସିହା ମେ ମାସରେ ଇହଲୀଳା ସମ୍ବରଣ ପର୍ଯ୍ୟନ୍ତ ଦୀର୍ଘ ୧୭ ବର୍ଷ କାଳ ସେ ଏହି ପଦ ଅଳଂକୃତ କରିଥିଲେ । ପ୍ରଥମେ ସ୍ୱାଧୀନତା ସଂଗ୍ରାମର ଜଣେ ସୈନିକ ରୂପେ ଯେପରି, ପରବର୍ତ୍ତୀ କାଳରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ସେହିପରି, ଜବାହାରଲାଲ ନେହରୁଙ୍କର ସକଳ ସିଦ୍ଧାନ୍ତ ଏବଂ କର୍ମଧାରା ଗଭୀର ସ୍ୱଦେଶ ପ୍ରୀତି ଏବଂ ଏହି ଦେଶବାସୀମାନଙ୍କର ସ୍ୱାର୍ଥ ଓ କଲ୍ୟାଣ ସାଧନ ନିମନ୍ତେ ଐକାନ୍ତିକ ଅଭିଳାଷ ଦ୍ୱାରା ପ୍ରଣୋଦିତ ହୋଇଥିଲା । ବିଶେଷତଃ ଭାରତର ଶିଶୁମାନଙ୍କୁ ସେ ଅତି ଭଲ ପାଉଥିଲେ । ସେହି ସ୍ନେହର ବିନିମୟରେ ଶିଶୁମାନେ ତାଙ୍କୁ ଶ୍ରଦ୍ଧାରେ "ଚାଚା ନେହରୁ" ବୋଲି ଡାକୁଥିଲେ । ବିଶେଷତଃ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ପୁସ୍ତକରେ 'ଚାଚା' ନେହରୁଙ୍କ ଜୀବନୀ ବହୁ ମନୋରମ ଚିତ୍ର ମାଧ୍ୟମରେ ବର୍ଣ୍ଣିତ ହୋଇଅଛି । ମୁଁ ନିଃସନ୍ଦେହ ଯେ ସେମାନେ ଏହାକୁ ପଢ଼ି ଉପଭୋଗ କରିବେ ଏବଂ ଉଦ୍‌ବୁଦ୍ଧ ହେବେ ।

V.V. Giri

ଭି. ଭି. ଗିରି

ରାଷ୍ଟ୍ରପତି ଭବନ
ନୂଆଦିଲ୍ଲୀ
ଅଗଷ୍ଟ ୨, ୧୯୭୧



ଏହା ହେଉଛି ଜଣେ ମହାମାନବ, ଜବାହରଲାଲ ନେହରୁଙ୍କ ଜୀବନର କାହାଣୀ । ପିଲାମାନେ ତାଙ୍କୁ ଡାକୁଥିଲେ "ଚାଚା ନେହରୁ ।"



ଆଜୀବନ ଦେଶସେବାରେ ରତ ଥାଇ ସୁଦ୍ଧା ପିଲାମାନଙ୍କ ସହିତ ହସଖେଳରେ ସମୟ କଟାଇବାକୁ ସେ ଭୁଲି ନଥିଲେ ।










ପିଲମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ, ତାଙ୍କୁ ନିଜର ସାଙ୍ଗମାନଙ୍କ ଭିତରୁ ଜଣେ ବୋଲି ଭାବୁଥିଲେ ।

## ୨ ପୂର୍ବ ପୁରୁଷ


ନେହରୁଙ୍କ ପୂର୍ବପୁରୁଷମାନେ କାଶ୍ମୀରର ଅଧିବାସୀ ଥିଲେ । ଅତେଇ ଶହ ବର୍ଷ ପୂର୍ବେ ସେମାନେ କାଶ୍ମୀରରୁ ଦିଲ୍ଲୀକୁ ହଟି ଆସିଥିଲେ ।
KASHMIR
DELHI
AGRA
INDIA
ଆହ୍ଲାହାବାଦ


ଜବାହରଲାଲ ନେହେରୁଙ୍କ ପିତାମହ ଗଙ୍ଗାଧର ନେହରୁ ଦିଲ୍ଲୀର କଟଆଲ ହୋଇ ଥିଲେ । ୧୮୫୭ ମସିହାରେ ହୋଇଥିବା ବିଦ୍ରୋହ ସମୟରେ ସେହି ସହରରେ ଘୋର ରକ୍ତପାତ ହୋଇଥିଲା । ଗଙ୍ଗାଧର ନେହରୁଙ୍କର ପତ୍ନୀ ଏକାନ୍ତ ଭୟଭୀତ ହୋଇ ପଡ଼ିଥିଲେ ।
ଏଠା ପରିବର୍ତ୍ତେ ଆଗ୍ରାରେ ରହିବା ନିରାପଦ ହେବ ନାହିଁ କି ?
ହଁ, ଆଗ୍ରା ନିରାପଦ ହେବ ।


ସମୁଦାୟ ପରିବାର ଆଗ୍ରା ଉଦ୍ଦେଶ୍ୟରେ ଯାତ୍ରାକଲେ, ବାଟରେ ସେମାନେ କେତେକ ଇଂରେଜ ସୈନ୍ୟଙ୍କ ହାତରେ ପଡ଼ିଲେ ।
ସେମାନଙ୍କ ଭିତରେ ଥିବା ଏହି ଝିଅଟି ନିଶ୍ଚୟ ଜଣେ ଇଂରେଜ କନ୍ୟା ।
ହେ, କଏ ଯାଉଛି, ରହ ।
ଏହି ଅପହରଣକାରୀମାନଙ୍କୁ ଫାଶୀ ଦିଆଯିବା ଦରକାର ।


ଗଙ୍ଗାଧରଙ୍କ ପୁଅ ସାମାନ୍ୟ ଇଂରାଜୀ ଜାଣିଥିଲେ ।
ନାହିଁ ଆଜ୍ଞା, ଏ ହେଉଛି ମୋର ଭଉଣୀ ।
ଏଁ, ତୁମ ଭଉଣୀ ? ତୁମେ ମିଛ କହୁଛ...


ସୌଭାଗ୍ୟକୁ ସେମାନଙ୍କର ଜଣେ ବନ୍ଧୁ ଆସି ପହଞ୍ଚିଲେ ।
ସାହେବ, ଏମାନେ ସତ କହୁଛନ୍ତି । ମୁଁ ଏମାନଙ୍କୁ ଜାଣେ ।
ଠିକ୍ ହେଁ ଯାଓ ।
ଗୋରା ସୈନ୍ୟମାନଙ୍କ ହାତରୁ ରକ୍ଷା ପାଇ ସେମାନେ ଆଗ୍ରାରେ ପହଞ୍ଚିଲେ ।


ଗଙ୍ଗାଧରଙ୍କର କନିଷ୍ଠ ପୁତ୍ର ମୋତିଲାଲ ୧୮୬୧ ମସିହାରେ ଆଗ୍ରାଠାରେ ଜନ୍ମହେଲେ । ମୋତିଲାଲ ବଡ ହୋଇ ଓକିଲାତି କଲେ । ସେ ତାଙ୍କର ବଡ ଭାଇଙ୍କୁ କହିଲେ—
ସମୁଦାୟ ପରିବାର ଆହ୍ଲାହାବାଦ ହଟିଗଲେ ଭଲ ହୁଅନ୍ତା । ଆମେ ଦୁହେଁ ସେଠାରେ ଓକିଲାତି କରନ୍ତେ ।

## ୩. ବାଲ୍ୟ ଜୀବନ (୧୮୮୯-୧୮୯୯)

ଆହ୍ଲାହାବାଦକୁ ଉଠି ଯାଇ ନେହରୁ ପରିବାର ସହରର ପ୍ରଧାନ ଛକ, ଚୌକରେ ଘର କରି ରହିଲେ ।




କେତେକ ବର୍ଷ ବିତିଗଲା । କଠିନ ପରିଶ୍ରମ ଦ୍ୱାରା ମୋତିଲାଲ ଜଣେ ବିଖ୍ୟାତ ଓ ସମୃଦ୍ଧିଶାଳୀ ବ୍ୟକ୍ତି ହୋଇ ଉଠିଲେ ।



ତାଙ୍କ ପତ୍ନୀ ସ୍ୱରୂପରାଣୀଙ୍କର ୧୮୮୯ ମସିହା ନଭେମ୍ବର ୧୪ ତାରିଖ ଦିନ ଗୋଟିଏ ପୁଅ ଜନ୍ମ ହେଲା । ପୁଅର ନାମ ରଖାଗଲା ଜବାହରଲାଲ




ସ୍ୱରୂପରାଣୀ ଥିଲେ ଧର୍ମପରାୟଣା । ସେ ଅନେକ ସମୟରେ ଜବାହରଲାଲଙ୍କୁ ସଙ୍ଗରେ ନେଇ ପବିତ୍ର ସଙ୍ଗମରେ ସ୍ନାନ କରୁଥିଲେ ।




ଜବାହରଙ୍କ ପ୍ରତି ଜନ୍ମ ଦିବସରେ ତାଙ୍କ ଓଜନର ଖାଦ୍ୟଶସ୍ୟ ଗରିବ ଲୋକମାନଙ୍କୁ ବାଣ୍ଟି ଦିଆଯାଉଥିଲା ।




ଜବାହରଲାଲଙ୍କ ନିଜ ବୟସର କେହି ଖେଳ ସାଥୀ ନଥିଲେ । ତାଙ୍କୁ ପିଲାଦିନେ ଏକାକୀ କଟାଇବାକୁ ହୋଇଥିଲା ।



## ୪. ଅଧ୍ୟୟନ ୧୯୦୦-୧୨

ମୋତିଲାଲ ତାଙ୍କ ପୁଅର ପଢ଼ାପଢ଼ି ପ୍ରତି ଖୁବ୍ ଯତ୍ନ ନେଉଥିଲେ । ପୁଅକୁ ପଢ଼ାଇବା ପାଇଁ ସେ ତାଙ୍କ ଘରେ ଇଂରେଜ ଶିକ୍ଷକ ଓ ଶିକ୍ଷୟିତ୍ରୀ ରଖିଥିଲେ ।



ଜବାହରଲାଲ ଦେଶରେ ଚାଲିଥିବା ବ୍ରିଟିଶ ଶାସନ ସମ୍ପର୍କରେ ହେଉଥିବା ଆଲୋଚନା ଶୁଣୁଥିଲେ ।

ରୁଷ ବିରୁଦ୍ଧରେ ଜାପାନର ବିଜୟ ୧୯୦୫ ଖବର ଶୁଣି ତାଙ୍କ ମନରେ ସାହସିକ କାର୍ଯ୍ୟର କଳ୍ପନା ଅଙ୍କୁରିତ ହୋଇଥିଲା ।






ଜବାହରଲାଲଙ୍କୁ ଯେତେବେଳେ ୧୫ ବର୍ଷ ବୟସ, ତାଙ୍କୁ ଇଂଲଣ୍ଡର ବିଖ୍ୟାତ ହାରୋ ସ୍କୁଲକୁ ପଠାଇ ଦିଆଯାଇଥିଲା ସେତେବେଳେ ତାଙ୍କ ପିତା ତାଙ୍କ ପାଖକୁ ଲେଖିଥିଲେ-




ଜବାହରଲାଲ କେମ୍ବ୍ରିଜରେ ବିଜ୍ଞାନ ଅଧ୍ୟୟନ କରୁଥିଲେ । ସେ ତାଙ୍କର ବଳକା ସମୟ ପଢ଼ାପଢ଼ି, ଟେନିସ ଓ କ୍ରିକେଟ ଖେଳରେ କଟାଉଥିଲେ



ସେତେବେଳେ ମୋତିଲାଲ ବ୍ରିଟିଶ ଶାସନର ବିରୋଧ କରୁ ନ ଥିବାର ଦେଖି ଜବାହରଲାଲ ମନେ ମନେ ଦୁଃଖିତ ହୋଇ ପିତାଙ୍କ ପାଖକୁ ଲେଖିଥିଲେ—




ଜବାହରଲାଲ ସାହସିକ କାର୍ଯ୍ୟକୁ ଭଲ ପାଉଥିଲେ । ଥରେ ସେ ନରୱେ ବୁଲି ଯାଉଥିବାବେଳେ ଗୋଡ଼ ଖସି ଗୋଟିଏ ବରଫ ସ୍ରୋତରେ ପଡ଼ିଯାଇଥିଲେ । ସ୍ରୋତ ମୁଖରେ ଏକ ଜଳପ୍ରପାତ ଆଡ଼କୁ ଭାସି ଯାଉଥିବାବେଳେ ଜଣେ ବନ୍ଧୁ ତାଙ୍କୁ ରକ୍ଷା କରିଥିଲେ ।



# ୫. ଯୁବାବସ୍ଥା ୧୯୧୨-୧୬


















# ୭· ଅନ୍ୱେଷଣ ୧୯୧୭-୧୯୧୯





















# ୭ ଜାଗରଣ ୧୯୧୯


ଭାରତବାସୀ ଗାନ୍ଧିଙ୍କ ପରାମର୍ଶକୁ ଗ୍ରହଣ କଲେ । ଲୋକ-ମାନେ ଉତ୍ତେଜିତ ହୋଇଉଠିଲେ ।
ବର୍ତ୍ତମାନ ଆମେ ହରତାଳ କରିବା ।
ସାରା ଦେଶ ଗାନ୍ଧିଜୀଙ୍କ ନେତୃତ୍ୱ ମାନିନେଲା


ସରକାର ତୀବ୍ର ଦମନଲୀଳା ଚଲାଇଲେ । ଅମୃତସରସ୍ଥିତ ଜାଲିଆନୱାଲା ବାଗଠାରେ ଜେନେରାଲ ଡାୟର ଲୋକମାନଙ୍କ ଉପରକୁ ଗୁଳି ଚଲାଇବାକୁ ଆଦେଶ ଦେଲେ । ଏହା ଫଳରେ ୫୦୦ରୁ ଅଧିକ ଜଣ ନିରସ୍ତ୍ର ଲୋକ ପ୍ରାଣ ହରାଇଲେ ଓ ଆହୁରି ବହୁ ଲୋକ ଆହତ ହେଲେ ।


ଏହି ଖବର ପାଇ ସାରା ଦେଶ ମର୍ମାହତ ହୋଇଥିଲା । ଉଚ୍ଚ କଂଗ୍ରେସ ନେତାମାନେ ଏକ ତଦନ୍ତ ଚଲାଇବା ପାଇଁ ପଞ୍ଜାବରେ ଯାଇ ପହଞ୍ଚିଥିଲେ ।
ଗୋରା ସିପାହୀମାନେ ଆମକୁ ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ବାଧ୍ୟ କରିଥିଲେ ।
ଏହା ଆମ ଦେଶ ପ୍ରତି ଘୋର ଅପମାନ ଗାନ୍ଧିଜୀ, ମୁଁ ଆପଣଙ୍କ ସହିତ ଆନ୍ଦୋଳନରେ ଯୋଗ ଦେବି ।


ଗାନ୍ଧିଜୀଙ୍କ ପ୍ରତି ମୋତିଲାଲଙ୍କର ଶ୍ରଦ୍ଧା ଦିନକୁ ଦିନ ବୃଦ୍ଧି ପାଇଥିଲା ।
ମୁଁ ଗାନ୍ଧିଜୀଙ୍କୁ ଭଲପାଏ ଏଇଥିପାଇଁ ଯେ ସେ ବାକ୍ୟ ସହିତ କର୍ମ ମିଳାନ୍ତି ।
ପିତା, ମୁଁ ଚାହେଁ ସମସ୍ତେ ଗାନ୍ଧିଜୀଙ୍କ ପରି ନିର୍ଭୀକ ହୁଅନ୍ତୁ


ତାପରେ ଗାନ୍ଧିଜୀ ଘୋଷଣା କରିଥିଲେ—
ଆମେ ବିଦେଶୀ ସରକାର ସହିତ କୌଣସି ପ୍ରକାରେ ସହଯୋଗ କରିବା ନାହିଁ । ଶାନ୍ତିପୂର୍ଣ୍ଣ ଭାବରେ ତାହାର ପ୍ରତିରୋଧ କରିବା । ଏହି ଉପାୟରେ ଭାରତ ସ୍ୱାଧୀନ ହୋଇ ପାରିବ ।
ଏହି ପ୍ରକାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଗଲା ।

## ୮· ଏକ ନୂଆ ଦୁନିଆ ୧୯୨୦


















## ୯· ସଂଗ୍ରାମରେ ଝାସ
### ୧୯୨୧-୨୨

ଜବାହରଲାଲ ଗ୍ରାମ ପରେ ଗ୍ରାମ ବୁଲିଲେ ।




ଗ୍ରାମବାସୀମାନେ ଆଗ୍ରହସହକାରେ ତାଙ୍କ କଥା ଶୁଣିଥିଲେ । ସେମାନଙ୍କର ସରଳ ବିଶ୍ୱାସ ଦେଖି ସେ ଅଭିଭୂତ ହୋଇ ଯାଇଥିଲେ ।

ସେମାନଙ୍କର ସ୍ନେହଶ୍ରଦ୍ଧାର ଏକ ଯାଦୁକରୀ ପ୍ରଭାବ ସେ ଦେଖିବାକୁ ପାଇଲେ ।




ଏହିପ୍ରକାରେ ଦେଶବାସୀଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଗଢି ଉଠିଥିଲା ।

ସେ ସମଗ୍ର ଉତ୍ତର ପ୍ରଦେଶରେ ଗାନ୍ଧୀଜୀଙ୍କର ବାର୍ତ୍ତାକୁ ପ୍ରସାରିତ କରିଥିଲେ ।



ସେ ଗ୍ରାମବାସୀମାନଙ୍କ ସହିତ ସେମାନଙ୍କ ମାଟି କୁଡ଼ିଆରେ ରହି ଦୀର୍ଘ ସମୟ ଧରି ଆଲୋଚନା କରୁଥିଲେ ଏବଂ ସେମାନଙ୍କ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଚେଷ୍ଟା କରୁଥିଲେ

ଅସହଯୋଗ ଆନ୍ଦୋଳନ ତେଜିଉଠିଲା । ସରକାର ମୋତିଲାଲ ଜବାହରଲାଲ ଓ ଅନ୍ୟାନ୍ୟ ହଜାର ହଜାର ଦେଶପ୍ରେମୀ ଲୋକଙ୍କୁ ଗିରଫ କଲେ । ଜବାହରଲାଲ ଘୋଷଣା କଲେ




ତାଙ୍କୁ ଛଅ ମାସ ସଜା ଦିଆଯାଇଥିଲା ।

ଆନ୍ଦୋଳନ ଚାଲିଥିବା ସମୟରେ ଚୌରି ଚୌରାଠାରେ କେତେକ ଲୋକ ଗୋଟିଏ ପୋଲିସ ଥାନା ପୋଡ଼ି ଦେଲେ ।



ଏହି ହିଂସାତ୍ମକ କାଣ୍ଡ ଯୋଗୁ ଗାନ୍ଧୀଜୀ ଆନ୍ଦୋଳନକୁ ସ୍ଥଗିତ ରଖିଲେ ।



## ୧୦ ଜେଲ ୧୯୨୨ – ୨୩

ଛଅମାସ ପରେ ଜବାହରଲାଲଙ୍କୁ ଖଲାସ କରି ଦିଆଗଲା କିନ୍ତୁ ମୋତିଲାଲ ଜେଲରେ ରହିଥାନ୍ତି । ତାଙ୍କର ପୁତ୍ରପ୍ରେମ ତାଙ୍କର ଜୀବନକୁ ବଦଳାଇ ଦେଇଥିଲା ।






ଏଥିଯୋଗୁଁ ତାଙ୍କୁ ପୁଣି ଗିରଫ କରାଗଲା ।

ମୁକ୍ତିର ସଂଗ୍ରାମରେ ଭାରତର ସେବା ସମ୍ମାନର କଥା । ମହାତ୍ମାଙ୍କ ନେତୃତ୍ୱରେ ଏହି ସେବା ଦୁଇଗୁଣ ସୌଭାଗ୍ୟର କଥା । କିନ୍ତୁ ଜଣେ ଭାରତୀୟ ପକ୍ଷରେ ପ୍ରିୟ ଜନ୍ମଭୂମିର ସେବାରେ ଦୁଃଖବରଣ କରିବାଠାରୁ ଅଧିକ ସୌଭାଗ୍ୟର କଥା କେବଳ ମାତ୍ର ଆଦର୍ଶ ନିମନ୍ତେ ଆତ୍ମବଳିଦାନଠାରୁ ଆଉ କ'ଣ ହୋଇ ପାରେ ?



ଜେଲ ଖାନାରେ ଜବାହରଲାଲ ନିଜର କପଡ଼ା ନିଜେ ସଫା କରୁଥିଲେ ........



ଏବଂ ବନ୍ଦୀମାନଙ୍କୁ ଲେଖାପଢ଼ା ଶିଖାଉଥିଲେ ।





## ୧୧· ନବ ଦିଗନ୍ତ ୧୯୨୩—୨୭

ଜେଲରୁ ଖଲାସ ହୋଇ ଜବାହରଲାଲ ନଭା ରାଜ୍ୟରେ ଚାଲିଥିବା ଦମନଲୀଳା ବିଷୟ ଶୁଣିବାକୁ ପାଇଲେ । ସେ ତୁରନ୍ତ ସେଠାକୁ ଯାତ୍ରା କଲେ, କିନ୍ତୁ ରାଜ୍ୟ ଛାଡ଼ି ଚାଲିଯିବା ଲାଗି ତାଙ୍କୁ ଆଦେଶ ଦିଆଗଲା ।




ତାଙ୍କୁ ଦୁଇବର୍ଷ କାରାଦଣ୍ଡ ଦିଆଗଲା ଏବଂ ଏକ ଅପରିଷ୍କାର ଜେଲରେ ତାଙ୍କୁ ରଖାଗଲା




ଏହାପରେ ସେ କଂଗ୍ରେସର ସାଧାରଣ ସମ୍ପାଦକ ଏବଂ ଏଲାହାବାଦ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହେଲେ । ସେ ଖୁବ ପରିଶ୍ରମ କରୁଥିଲେ କିନ୍ତୁ ତାଙ୍କର ଉପାର୍ଜନ ବୋଲି କିଛି ନ ଥିଲା । ଏହି ଚିନ୍ତା ତାଙ୍କ ମନକୁ ଘାଣ୍ଟିଲା




କେତେକ ବର୍ଷ ପରେ ଏକ ବକ୍ତୃର ସମୟରେ ସେ କହିଥିଲେ-



“ଭାରତରୁ ବ୍ରିଟିଶ ଶାସନକୁ ନିର୍ମୂଳ କରା ନ ଯିବା ପର୍ଯ୍ୟନ୍ତ ମୋର ଦେଶବାସୀଙ୍କର ଦୁଃଖ କମି ନ ପାରେ ବୋଲି ମୁଁ ଜାଣିବା ପରଠାରୁ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢ଼ିବା ଛଡ଼ା ମୋର ଆଉ ଅନ୍ୟ ଧନ୍ଦା, ଅନ୍ୟ ଲକ୍ଷ୍ୟ କିଛି ନାହିଁ ।”

କମଳା ବହୁଦିନ ଧରି ଅସୁସ୍ଥ ଥିଲେ । ଚିକିତ୍ସା ପାଇଁ ସେ ତାଙ୍କୁ ଇଉରୋପ ନେଇଥିଲେ । ସେହିଠାରେ ରହୁଣି କାଳରେ ସେ ବ୍ରସେଲସଠାରେ ଦଳିତ ଜାତି କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ ।



ସେ ରୁଷ ଦେଶକୁ ମଧ୍ୟ ଗଲେ ।



## ୧୨ ପ୍ରତିଜ୍ଞା    ୧୯୨୭-୨୮


















## ୧୩· ସାଇମନ କମିଶନ ୧୯୨୮

ଭାରତ ପାଇଁ ଏକ ନୂଆ ଧରଣର ସରକାର ସମ୍ପର୍କରେ ପ୍ରସ୍ତାବ ଦେବାକୁ ଇଂଲଣ୍ଡରୁ ସାର୍ ଜନ ସାଇମନଙ୍କ ନେତୃତ୍ୱରେ ଏକ କମିଶନ ପଠାଗଲା । କମିଶନରେ ଜଣେ ହେଲେ ଭାରତୀୟ ନ ଥିଲେ । ଦେଶ ଏହାକୁ ବାସନ୍ଦ କରିବାକୁ ସ୍ଥିର କଲା















# ୧୪·ବାପୁ ଏବଂ ଜବାହର ୧୯୨୮-୨୯
















ଗାନ୍ଧୀଜୀ ଉତ୍ତର ଦେଲେ-

Aligarh
4/11/29

My dear Jawahar,

Resist me always when my suggestion does not appeal to your head or heart. I shall not love you the less for it. But why are you dejected?... Resume your unfailing cheerfulness.

Yours
Bapu

ଶେଷରେ ଜବାହରଲାଲ କଂଗ୍ରେସ ସଭାପତି ହେବାକୁ ରାଜି ହେଲେ ।

## ୧୫. ଭାରତର ମଣି ୧୯୩୦













ଜାନୁୟାରୀ ୨୬, ୧୯୩୦, ସ୍ୱାଧୀନତା ଦିବସ ରୂପେ ପାଳିତ ହେଲା । ସାରା ଦେଶରେ ହଜାର ହଜାର ଲୋକ ଏହି ଶପଥ ନେଲେ —





## ୧୭· ପୁଣି ଜେଲ ୧୯୩୦-୩୧

ସରକାର ଯଦି ଲଣ ଉପରେ ବସୁଥିବା କରକୁ ହଠାଇ ନ ନଅନ୍ତି, ତା'ହେଲେ ସେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବେ ବୋଲି ଗାନ୍ଧିଜୀ ଘୋଷଣା କଲେ ।




ସରକାର ଏହି କର ହଠାଇ ନେବାକୁ ମନା କରିଦେବାରୁ, ଗାନ୍ଧିଜୀ ଲବଣ ଆଇନ ଭଙ୍ଗ କରିବା ଉଦ୍ଦେଶ୍ୟରେ ତାଙ୍କର ଐତିହାସିକ ୨୪୧ ମାଇଲ ଡାଣ୍ଡୀ ପାଦଯାତ୍ରା ଆରମ୍ଭ କଲେ । ପଥରେ ମୋତିଲାଲ ଓ ଜବାହରଲାଲ ତାଙ୍କୁ ଭେଟିଥିଲେ ।




ତା' ପରେ ଜବାହରଲାଲ ଏବଂ ସାରା ଦେଶରେ ହଜାର ହଜାର ଲୋକ ଲବଣ ଆଇନ ଭଙ୍ଗ କରିଥିଲେ ।



ଜବାହରଲାଲ ଗିରଫ ହେଲେ ଏବଂ ପୁନର୍ବାର ଜେଲ ଗଲେ ।



"ବ୍ରିଟିଶ ଶାସନକୁ ସମୂଳେ ହଟାଇ-ଦେବା ପାଇଁ ଭାରତବାସୀ ଜାନୁୟାରୀ ୨୬ ତାରିଖ ଦିନ ଶପଥ ନେଇଥିଲେ । ମୁକ୍ତିର ମୂଲ୍ୟ ହେଉଛି ରକ୍ତ ଏବଂ ଯାତନା ସ୍ୱୀକାର । ଆମକୁ ପୂର୍ଣ୍ଣମାତ୍ରାରେ ଏହି ମୂଲ୍ୟ ଦେବାକୁ ହେବ । ସ୍ୱାଧୀନ ଭାରତ ଜିନ୍ଦାବାଦ ।"

ଜେଲ ଭିତରୁ ସେ କନ୍ୟା ଇନ୍ଦିରାଙ୍କ ନିକଟକୁ ଯେଉଁ ଚିଠି ସବୁ ଲେଖିଥିଲେ, ତାହା ପରେ "ବିଶ୍ୱ ଇତିହାସ ପ୍ରତି ଦୃଷ୍ଟିପାତ" ରୂପେ ପ୍ରକାଶିତ ହେଲା ।

କମଳା ଅସୁସ୍ଥ ଥାଇ ସୁଦ୍ଧା ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ତାଙ୍କୁ ମଧ୍ୟ ଗିରଫ କରାଗଲା ।




ମୋତିଲାଲ ସାଂଘାତିକ ଅସୁସ୍ଥ ହୋଇ ପଡ଼ିଲେ । ତେଣୁ ସରକାର ଜବାହରଲାଲଙ୍କୁ ଖଲାସ କରିଦେଲେ ।



ମୋତିଲାଲ ଆଉ ଭଲ ହେଲେ ନାହିଁ । ତାଙ୍କ ପୁତ୍ର ମୁକ୍ତିର ସଂଗ୍ରାମ ଚାଲୁ ରଖିବେ ବୋଲି ମନରେ ଦୃଢ ବିଶ୍ୱାସ ରଖି ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

## ୧୭ ଅସନ୍ତୋଷ ୧୯୩୧







ବ୍ରିଟିଶ ସରକାର ପ୍ରତିନିଧିମାନଙ୍କ ମଧ୍ୟରେ ରହିଥିବା ମତପାର୍ଥକ୍ୟର ଫାଇଦା ଉଠାଇଲେ







ସରକାର ଲୋକମାନଙ୍କ ପ୍ରତି ଆହୁରି କଠୋର ହୋଇ ଉଠିଲେ ।






## ୧୮· ଜେଲ ଭିତରେ ଓ ବାହାରେ ୧୯୩୨-୩୪

ଗୋଲଟେବୁଲ ସମ୍ମିଳନୀ ବିଫଳ ହେଲା । ନେହରୁ ଓ ଅନ୍ୟ ନେତାମାନଙ୍କୁ ଏବଂ ପରେ ଗାନ୍ଧୀଜୀଙ୍କୁ ପୁଣି ବନ୍ଦୀ କରାଗଲା । ଆଇନ ଅମାନ୍ୟ ଆନ୍ଦୋଳନ ପୁଣି ଆରମ୍ଭ ହେଲା । ଜବାହରଲାଲଙ୍କର ବୃଦ୍ଧା ମାତା ମଧ୍ୟ ଆନ୍ଦୋଳନରେ ଯୋଗଦେଲେ ଏବଂ ପୋଲିସ ତାଙ୍କୁ ନିର୍ଦ୍ଦୟ ଭାବରେ ପ୍ରହାର କରିଥିଲେ ।



ଏହାପରେ ସେ ବରେଲୀ ଜେଲରେ ଥିବା ତାଙ୍କ ପୁତ୍ରଙ୍କୁ ଦେଖିବାକୁ ଯାଇଥିଲେ ।



ପ୍ରାୟ ଏହିକବେଳେ ବ୍ରିଟିଶ ସରକାର କହିବାକୁ ଆରମ୍ଭ କଲେ ଯେ ହରିଜନମାନଙ୍କୁ ହିନ୍ଦୁ ବୋଲି ଧରାଯାଇ ପାରିବ ନାହିଁ।




ନେହେରୁ ପ୍ରଥମେ କିଛି ବୁଝି ପାରିଲେ ନାହିଁ ।




କିନ୍ତୁ ସେ ଖୁବ୍ ଶୀଘ୍ର ବୁଝିପାରିଲେ ଯେ ଗାନ୍ଧୀଜୀ ଯାହା କରୁଛନ୍ତି ଠିକ୍ କରୁଛନ୍ତି

ନେହେରୁ ଜେଲରୁ ଖଲାସ ହେବା ବେଳକୁ ବିହାରରେ ଏକ ଭୂମିକମ୍ପ ହୋଇ ହଜାର ହଜାର ଲୋକ ପ୍ରାଣ ହରାଇ ଥାନ୍ତି । ସେ ତୁରନ୍ତ ସେଠାକୁ ଯାତ୍ରା କଲେ ।






# ୧୯· କମଲା ୧୯୩୪ -୩୬

ଏଲାହାବାଦ ଫେରଆସି

ନେହରୁ ପୁଣି ସରକାର ବିରୋଧୀ ଭାଷଣମାନ ଦେବାକୁ ଆରମ୍ଭ କରିଦେଲେ ତାଙ୍କୁ ପୁଣି ଗିରଫ କରିବାପାଇଁ ପୁଲିସ ପଠାଇଥିଲେ ।




ତାଙ୍କୁ ଡେରାଡୁନ୍ ଜେଲକୁ ନିଆ ଯାଇଥିଲା ।




ଏହିଠାରେ ଥାଇ ନେହରୁ ତାଙ୍କ ଜୀବନର କାହାଣୀ ଲେଖିବାକୁ ଆରମ୍ଭ କରିଥିଲେ ।

କମଲା ଘୋର ଅସୁସ୍ଥ ବୋଲି ଖବର ଆସିଲା । ସ୍ତ୍ରୀଙ୍କୁ ଦେଖିବାକୁ ଯିବାଲାଗି ନେହରୁଙ୍କୁ ଅନୁମତି ଦିଆଗଲା । ସେ ରାଜନୀତିରେ ଭାଗନେବେ ନାହିଁ ବୋଲି ପ୍ରତିଶ୍ରୁତି ଦେଲେ ସରକାର ତାଙ୍କୁ ଛାଡ଼ି ଦେଇ ପାରନ୍ତି ବୋଲି କୁହାଗଲା ।




କମଲାଙ୍କୁ ତୁରନ୍ତ ଏକ ସ୍ୱାସ୍ଥ୍ୟନିବାସକୁ ନିଆଗଲା । ନେହରୁ ଯେପରି ପତ୍ନୀଙ୍କ ନିକଟରେ ରହି ପାରିବେ, ସେଥିଲାଗି ତାଙ୍କୁ ଆଲମୋଡ଼ା ଜେଲକୁ ସ୍ଥାନାନ୍ତରିତ କରାଗଲା ।



କମଲାଙ୍କ ଅବସ୍ଥା ଭଲଆଡ଼କୁ ଗତି ନ କରିବାରୁ ଶେଷରେ ତାଙ୍କୁ ଚିକିତ୍ସା ପାଇଁ ସୁଇଜରଲାଣ୍ଡକୁ ନିଆଗଲା ।

ନେହରୁ ଖଲାସ ହୋଇ ସ୍ତ୍ରୀଙ୍କ ସହିତ ଇଉରୋପ ଯାଇଥିଲେ । ସେ ସ୍ତ୍ରୀଙ୍କୁ ଦେଖିବା ଲାଗି ପ୍ରତିଦିନ ଦୁଇଥର ଗ୍ରାମ ଗ୍ରାମ ଡାକ୍ତରଖାନାକୁ ଯିବାଆସିବା କରନ୍ତି ।




କମଲାଙ୍କ ଚିତାଭସ୍ମ ଧରି ସେ ବିମାନ ଯୋଗେ ଫେରି ଆସିଥିଲେ ।



# ୨୦.ନିର୍ବାଚନ ୧୯୩୬-୩୭

ପ୍ରଦେଶଗୁଡ଼ିକର ପ୍ରଶାସନ କ୍ଷେତ୍ରରେ ଭାରତୀୟମାନଙ୍କ ହାତରେ କେତେକ ଦାୟିତ୍ୱ ଦେବା ଲାଗି ଇଂରେଜ ସରକାର ସ୍ଥିର କଲେ । କିନ୍ତୁ ସେମାନେ ଅସଲ କ୍ଷମତା ନିଜ ହାତରେ ରଖିଥିଲେ ।

ଆମେ ନିର୍ବାଚନରେ ଲଢ଼ିବା ।

ନେହରୁ ଭାବୁଥିଲେ ଯେ ନିର୍ବାଚନରେ ଲଢ଼ିବାର ଅର୍ଥ ବ୍ରିଟିଶ ସହିତ ସହଯୋଗ କରିବା । କିନ୍ତୁ ଶେଷରେ ସେ ରାଜି ହୋଇଥିଲେ ।

ନେହରୁ କଂଗ୍ରେସ ପାଇଁ ନିର୍ବାଚନ ପ୍ରଚାର କାର୍ଯ୍ୟରେ ବିମାନ, କାର, ଟ୍ରେନ, ପଦବ୍ରଜ, ଘୋଡ଼ା ଓ ହାତୀ ଯୋଗେ ୫୦,୦୦୦ ମାଇଲ ଭ୍ରମଣ କରିଥିଲେ ।




ଥରେ ସେ ମୋଟର ଯୋଗେ ଯାଉଥିବା ବେଳେ ଗୋଟିଏ ଗାଈ ସହିତ ତାଙ୍କ ଗାଡ଼ିର ଧକ୍କା ଲାଗିଲା ।







ନିର୍ବାଚନରେ କଂଗ୍ରେସ ଜୟ ଲାଭ କରି ଆଠଟି ପ୍ରଦେଶରେ ସରକାର ଗଠନ କଲା ।




ନେହରୁ ଭାରତର ପ୍ରଗତି ପାଇଁ ଏକ ଯୋଜନା ତିଆରି କରିବାକୁ ଚାହୁଁଥିଲେ । ତେଣୁ କଂଗ୍ରେସ ଏକ ଜାତୀୟ ଯୋଜନା କମିଟି ଗଠନ କରିଥିଲା ।



# ୨୧. ଯୁଦ୍ଧର ଘନଘଟା ୧୯୩୮


















# ୨୨ ଯୁଦ୍ଧ ୧୯୩୯-୪୦


















## ୨୩· ଉତ୍ତେଜନା ୧୯୪୦-୪୨

ଛଅ ମାସ ପରେ ନେହରୁ ଖଲାସ ହେଲେ । ଏହି ସମୟରେ ତାଙ୍କର କନ୍ୟା ଇନ୍ଦିରା ଫିରୋଜ ଗାନ୍ଧୀଙ୍କୁ ବିବାହ କଲେ ।



ଜାପାନ ଯୁଦ୍ଧରେ ପ୍ରବେଶ କଲା । ସମସ୍ତ ଏସିଆକୁ ମୁକ୍ତ କରିବା ବୋଲି ଜାପାନ ପ୍ରତିଶ୍ରୁତି ଦେଲା ।




ଜାପାନ ବ୍ରିଟିଶ ଉପନିବେଶଗୁଡ଼ିକୁ ଦଖଲ କରିବାକୁ ଆରମ୍ଭ କରିବାରୁ ବ୍ରିଟେନ ଚକିତ ହୋଇ ପଡ଼ିଲା । ଚର୍ଚ୍ଚିଲ କ୍ରିପସଙ୍କୁ ଭାରତକୁ ପଠାଇଲେ ।







ଯୋଜନାଟି ଅସ୍ୱୀକୃତ ହୋଇଥିଲା ।

ଜାପାନୀ ସୈନ୍ୟମାନେ ଭାରତ ଆଡ଼େ ମାଡ଼ି ଆସୁଥାନ୍ତି ।




ସୁଭାଷ ବୋଷ ଦେଶରୁ ଖସି ଯାଇ ଭାରତୀ ମୁକ୍ତି ଉଦ୍ଦେଶ୍ୟରେ ଜର୍ମାନୀ ଓ ଜାପାନର ସାହାଯ୍ୟ ଲୋଡ଼ିଥିଲେ । ବିଦେଶର ଭାରତୀୟ ମାନଙ୍କୁ ନେଇ ସେ ଏକ ମୁକ୍ତିସେନା ଗଠନ କଲେ ।



# ୨୪. ଭାରତ ଛାଡ଼ ୧୯୪୨.


















## ୨୫. ଅସ୍ଥିରତା ୧୯୪୫-୪୭


















## ୨୭ . ମିଷ୍ଟର ଜନ୍ନା ୧୯୪୬

ଭାରତୀୟ ନେତାମାନଙ୍କ ସହିତ କଥାବାର୍ତ୍ତା କରିବାଲାଗି ତିନି ଜଣ ବ୍ରିଟିଶମନ୍ତ୍ରୀ ଭାରତ ଆସିଲେ କିନ୍ତୁ କୌଣସି ରାଜିନାମା ହୋଇ ପାରିଲା ନାହିଁ ।







ଲୋକମାନଙ୍କୁ ପ୍ରକୃତିସ୍ଥ କରାଇବା ପାଇଁ ଗାନ୍ଧିଜୀ ନୋଆଖାଲି, ବିହାର ଓ ପଞ୍ଜାବ ଗସ୍ତ କଲେ ।



କଂଗ୍ରେସ ଓ ଲିଗ ମିଶି ଏକ ମିଳିତ ସରକାର ଗଠନ କରନ୍ତୁ ବୋଲି ନେହରୁ ପ୍ରସ୍ତାବ ଦେଲେ ।




ଶେଷରେ ଭାଇସରାୟ ନୂଆ ସରକାର ଗଠନ କଲେ ଏହାର ନେତା ହେଲେ ନେହରୁ । ଭିତରୁ ସରକାରକୁ ଫସାଇ ଦେବା ଅଭିପ୍ରାୟରେ ଜିନ୍ନା ତାଙ୍କ କୌଶଳ ପ୍ରୟୋଗ କଲେ ।




ଲିଗ ପ୍ରତିନିଧିମାନେ ନୂଆ ସରକାରଙ୍କ କାର୍ଯ୍ୟରେ ଅନ୍ତରାୟ ହେଲେ । ଜାତୀୟତାବାଦୀ ମୁସଲମାନେ ଏଥିଯୋଗୁଁ ଘୋର ଅସନ୍ତୁଷ୍ଟ ହେଲେ ।



# ୨୭ ଦୁଇଟି ଘଟଣା ୧୯୪୭


















# ୨୮. ବିଭାଜନ ୧୯୪୬-୪୭

ବ୍ରିଟିଶ ସରକାର ନେହରୁ ଓ ଜିନ୍ନାଙ୍କୁ ଲଣ୍ଡନକୁ ଡକାଇଲେ କଥାବାର୍ତ୍ତା ସକାଶେ ।




ଲଣ୍ଡନରୁ ଫେରି ଆସି ନେହରୁ ପଞ୍ଜାବର ଦଂଗା-ବିପନ୍ନ ଅଞ୍ଚଳସବୁ ପରିଦର୍ଶନ କଲେ ।




ଲର୍ଡ ମାଉଣ୍ଟବାଟେନ ଏତକ ବେଳେ ଭାଇସରାୟ ହୋଇ ଆସିଲେ ଏବଂ ଜିନ୍ନାଙ୍କୁ ବୁଝା ସୁଝା କରାଇବା ପାଇଁ ଚେଷ୍ଟା କଲେ ।




ଇତିମଧ୍ୟରେ ଗୃହଦାହ, ଲୁଣ୍ଠତରାଜ ଓ ହତ୍ୟା କାଣ୍ଡ ଚାଲି ରହିଥାଏ ।




ମାତୃଭୂମିକୁ ଦ୍ୱିଖଣ୍ଡିତ କରିବା କଥା ଗାନ୍ଧିଙ୍କ ଆଦୌ କାନକୁ ନେଉ ନ ଥିଲେ ।



କିନ୍ତୁ ଜିନ୍ନା ଅଡ଼ି ବସିଥାନ୍ତି । ବ୍ରିଟିଶ ସରକାର ଆଉ ଅନ୍ୟ କୌଣସି ଉପାୟ ପାଇଲେ ନାହିଁ । ଶେଷରେ ଭାଇସରାୟ ନେତାମାନଙ୍କୁ ଡାକି ଘୋଷଣା କଲେ—



# ୨୯. ସ୍ୱାଧୀନତା ୧୯୪୭

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା ଏବଂ ନେହରୁ ହେଲେ, ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ।

ବହୁବର୍ଷ ପୂର୍ବେ ଆମେ ନିୟତି ସହିତ ଏକ ବୁଝାମଣା କରିଥିଲୁ ଏବଂ ବର୍ତ୍ତମାନ ସେହି ବେଳ ଆସିଛି ଯେତେବେଳେ କି ଆମକୁ ଆମର ଶପଥ ପୂରଣ କରିବାକୁ ହେବ । ଆମକୁ ସ୍ୱାଧୀନ ଭାରତର ମହାନ ସୌଧ ନିର୍ମାଣ କରିବାକୁ ହେବ ।






ଦେଶର ବିଭାଜନ ଫଳରେ ଲକ୍ଷ ଲକ୍ଷ ଲୋକ ଗୃହହୀନ ହୋଇ ପଡ଼ିଲେ । ସରକାର ଏକ ଜଟିଳ ସମସ୍ୟାର ସମ୍ମୁଖୀନ ହେଲେ ।







ନେହରୁ ନିଜକୁ ଅନାଥ ବୋଲି ମନେ କଲେ ।

ବନ୍ଧୁ ଓ ସାଥୀଗଣ, ଆମ ଜୀବନର ଆଲୋକ ଲିଭି ଯାଇଛି । ବର୍ତ୍ତମାନ ସବୁଆଡ଼ ଖାଲି ଅନ୍ଧକାରମୟ ।



ନେହରୁଙ୍କ ପକ୍ଷେ ଏହା ଥିଲା ଏକ ଘୋର ଉଦ୍‌ବେଗ ଓ ଉଦାସ୍ୟର ବେଳ । ସେ ଦେଶର ଭବିଷ୍ୟତ କଥା ଭାବି ଚିନ୍ତିତ ହୋଇ ପଡ଼ିଥିଲେ । କିନ୍ତୁ ସେ ସାହସ ହରାଇ ନ ଥିଲେ ।



## ୩୦· ଏକ ନୂତନ ଜୀବନ

ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ ଦିଗରେ ନେହରୁ ଦେଶର ଲୋକ ପ୍ରତିନିଧିମାନଙ୍କୁ ମାର୍ଗ ଦର୍ଶନ ଯୋଗାଇ ଥିଲେ ।




ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଶେଷ ହେଲା । ଭାରତ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଏକ ଗଣରାଜ୍ୟରେ ପରିଣତ ହେଲା ।



ଜନସାଧାରଣଙ୍କ ପାଇଁ ଏକ ଉନ୍ନତ ଜୀବନ ହାସଲ କରିବା ଦିଗରେ ରାଜନୈତିକ ମୁକ୍ତି ଏକ ସୁଯୋଗ ମାତ୍ର ବୋଲି ନେହରୁ ଜାଣିଥିଲେ । ଦେଶର ଉନ୍ନତି ପାଇଁ ଯୋଜନାମାନ ପ୍ରସ୍ତୁତ କରିବାକୁ ସେ ଯୋଜନା କମିଶନ ବସାଇଥିଲେ ।






ତା'ପରେ ଦେଶବାସୀ ବାରମ୍ବାର ସେମାନଙ୍କର ପ୍ରତିନିଧିମାନଙ୍କ ଜରିଆରେ ନେହରୁଙ୍କୁ ଦେଶର ନେତା ରୂପେ ବାଛିଲେ ।



ଇଂରେଜ ମାନଙ୍କ ପ୍ରତି ତାଙ୍କର କୌଣସି ଘୃଣା ନ ଥିଲା । ରାଜ୍ୟ ଗୋଷ୍ଠୀ ପ୍ରଧାନମନ୍ତ୍ରୀ ସମ୍ମିଳନୀ ଗୁଡ଼ିକରେ ସେ ଯୋଗ ଦେଉଥିଲେ ।




୩୧. ଜାତିର ନବ ନିର୍ମାଣ
ନେତାମାନଙ୍କ ମଧ୍ୟରେ ଘୋରତର ମତାନ୍ତର ଦେଖାଦେଲା ।
ନା, ଏପରି କଳହ ଦେଶକୁ ଧ୍ୱଂସ କରିଦେବ ।
ନେହରୁ ପୁଣି କଂଗ୍ରେସର ସଭାପତି ନିର୍ବାଚିତ ହେଲେ ।


ନବ ଭାରତ ଦରିଦ୍ରତା, ଅଜ୍ଞତା ଓ ରୋଗରୁ ନିଜକୁ ମୁକ୍ତ କରିବ । କିନ୍ତୁ ସେଥିଲାଗି ଆମକୁ କଠୋର ପରିଶ୍ରମ କରିବାକୁ ହେବ, ଉତ୍ପାଦନ ବୃଦ୍ଧି କରିବାକୁ ହେବ ଏବଂ ସମ୍ପଦର ଉପଯୁକ୍ତ ବଣ୍ଟନ ପ୍ରତି ଦୃଷ୍ଟି ଦେବାକୁ ହେବ ।


ତାଙ୍କ ଆଗରେ ସେ ଥୋଇଲେ ଏକ ନୂତନ ସାମାଜିକ ଲକ୍ଷ୍ୟ
ଭାରତ ଏକ ସମାଜବାଦୀ ସମାଜ ଗଢ଼ିବ ।


ସେ ବୃହଦାକାର ଭାକ୍ରାନଙ୍ଗଲ ସକାଶେ ମନରେ ଗର୍ବ ଅନୁଭବ କରୁଥିଲେ ।
ଏହା ହେଉଛି ଆଧୁନିକ ଭାରତର ପ୍ରତୀକ; ଏହାର ଭବିଷ୍ୟତ ସୁଖସମୃଦ୍ଧିର ପ୍ରତୀକ ।


ସେ ସାରା ଦେଶରେ ବହୁ ଜାତୀୟ ପରୀକ୍ଷାଗାର ଏବଂ ବଡ଼ ବଡ଼ କଲକାରଖାନାମାନ ବସାଇଲେ ।
ଜାତୀୟ ପରୀକ୍ଷାଗାର
ରସାୟନିକ ସାର କାରଖାନା ।
ଏହି ସବୁ ହେଲା ନୂଆ ଯୁଗର ମନ୍ଦିର ।
ଇସପାତ କାରଖାନା ।
ପରମାଣୁ ରିଆକ୍ଟର ।


ନବଭାରତ ନିର୍ମାଣରେ ଶ୍ରମିକମାନଙ୍କ ଭୂମିକାର ସ୍ୱୀକୃତି ସ୍ୱରୂପ ସେ ନୂତନ ପରିକଳ୍ପନାମାନ ଉଦ୍ଘାଟନ କରିବାକୁ ଶ୍ରମିକମାନଙ୍କୁ ଅନୁରୋଧ କରୁଥିଲେ ।

# ୩୨. ସର୍ବାଙ୍ଗୀନ ପ୍ରଗତିର ପଥେ

ନେହରୁଙ୍କ ନାମ ଦେଶର କୋଣେ କୋଣେ ଶୁଣାଗଲା; ତାଙ୍କର ବାଣୀ ଦେଶର ଘରେ ଘରେ ପହଞ୍ଚିଲା ।


















## ୩୭. ବୃହତ୍ତର ଦୃଷ୍ଟିକୋଣ

ନେହରୁ ସର୍ବଦା ପରାଧୀନ ଦେଶଗୁଡିକର ମୁକ୍ତି ଆନ୍ଦୋଳନକୁ ସମର୍ଥନ କରୁଥିଲେ । ସେ ୧୯୪୭ ମସିହାରେ ନୂଆଦିଲ୍ଲୀଠାରେ ଏସୀୟ ଦେଶମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ଡାକିଥିଲେ ।




ନେହରୁଙ୍କର ବାଣୀଥିଲା ଭାରତର ବାଣୀ । ସମଗ୍ର ଜଗତ ଏଥିପ୍ରତି କର୍ଣ୍ଣପାତ କରିଥିଲା ଓ ସମ୍ମାନ ଦେଖାଉଥିଲା ।




ଯୁକ୍ତରାଷ୍ଟ୍ର ଆମେରିକା କଂଗ୍ରେସରେ ଉଦବୋଧନ ଦେବା ଲାଗି ନେହରୁଙ୍କୁ ନିମନ୍ତ୍ରଣ କରାଯାଇଥିଲା ।




ସେ ଚୀନର ନୂତନ ସରକାରକୁ ସ୍ୱୀକାର କରିଥିଲେ ଏବଂ ଜାତିସଂଘରେ ଏହାର ସ୍ଥାନ ସପକ୍ଷରେ ଯୁକ୍ତି ଦର୍ଶାଇଥିଲେ ।



ନେହରୁ ଚୀନ ଉପରେ ବିଶ୍ୱାସ ରଖିଥିଲେ, କିନ୍ତୁ ଚୀନ ପରେ ବିଶ୍ୱାସଘାତକତା କଲା ।




ସେ ପୃଥିବୀର ଦେଶମାନଙ୍କ ମଧ୍ୟରେ ଏକତା ଓ ଶାନ୍ତି ପ୍ରତିଷ୍ଠା ଲାଗି ସର୍ବଦା ଉଦ୍ୟମ କରିଥିଲେ ।

୧୯୫୫ ମସିହାରେ ବାନ୍ଦୁଙ୍ଗଠାରେ ଏସୀୟ ଓ ଆଫ୍ରିକୀୟ ଦେଶମାନଙ୍କର ଏକ ବୃହତ୍ତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।



## ୩୪. ଶାନ୍ତିର ଅଗ୍ରଦୂତ

ନେହରୁ ଯୁଦ୍ଧକୁ ଘୃଣା କରୁଥିଲେ ଭାରତ ଶକ୍ତିମାନ ଗୋଷ୍ଠୀଗୁଡ଼ିକରୁ ଅଲଗା ରହି ସବୁ ଦେଶଙ୍କ ସହିତ ମିତ୍ରତା ରଖୁ ବୋଲି ସେ ଚାହୁଁଥିଲେ । କୋରିଆ, ପଶ୍ଚିମ ଏସିଆ ଓ କଙ୍ଗୋକୁ ଭାରତୀୟ ସୈନ୍ୟ ପଠାଇ ଥିଲେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଜନ୍ମ। ପରମାଣୁ ଅସ୍ତ୍ର ଦ୍ୱାରା ବିନାଶ ଏବଂ ତିଷ୍ଠିବା ପନ୍ଥା ମଧ୍ୟରୁ ଶ୍ରେୟ ପନ୍ଥାଟିକୁ ବାଛି ନେବାର ବେଳ ଆସି ଯାଇଛି ବୋଲି ସେ ଅନୁଭବ କରିଥିଲେ ।



ତାଙ୍କର ନୀତି ସବୁ ବିଚିତ୍ର ବୋଲି କେତେକ ଲୋକ ଭାବିଥିଲେ ।




ରୁଷ ନେତାମାନେ ଭାରତ ଆସିଲେ




ନେହରୁ ଯେଉଁଆଡ଼େ ଗଲେ, ଶାନ୍ତିର ବାର୍ତ୍ତା ପ୍ରଚାର କଲେ ।

ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ ଆଇଜେନ୍‌ହାୱାର ଭାରତ ପରିଦର୍ଶନରେ ଆସିଥିବାବେଳେ ତାଙ୍କୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯାଇଥିଲା ।



ଜାତିସଂଘରେ ଭାଷଣ ଦେବା ଲାଗି ନେହରୁଙ୍କୁ ନିମନ୍ତ୍ରଣ କରାଯାଇଥିଲା ।




କ୍ରମେ କ୍ରମେ ଅଧିକରୁ ଅଧିକ ଦେଶ ନେହରୁଙ୍କ ନୀତି ଗୁଡ଼ିକୁ ବୁଝିବାକୁ ଆରମ୍ଭ କରିଥିଲେ ।



## ୩୫. ଦୈନନ୍ଦିନ ଜୀବନ

ନେହରୁଙ୍କର ଦିବସର ପ୍ରଥମ କାମ ଥିଲା ବ୍ୟାୟାମ କରିବା ।







ପ୍ରାତଃଭୋଜନ —































## ୩୭. ମନୁଷ୍ୟ ହିସାବରେ


ସେ ଜଣେ ଅସାଧାରଣ ସାହସୀ ବ୍ୟକ୍ତି ଥିଲେ । ଦଙ୍ଗା ଚାଲିଥିବା ସମୟରେ ସେ ନିଜର ନିରାପତ୍ତାକୁ ପରବାୟ ନ କରି ଉତ୍କ୍ଷିପ୍ତ ଲୋକମାନଙ୍କ ଭିତରକୁ ପଶି ଯାଉଥିଲେ ।
ଏ ପାଗଳାମି ବନ୍ଦ କର ।


the way of Buddha
କର୍ମକାଣ୍ଡରେ ବିଶ୍ୱାସୀ ନ ଥିଲେ ହେଁ, ଭାରତର ପ୍ରାଚୀନ ସଂସ୍କୃତି ସକାଶେ ସେ ଗର୍ବ କରୁଥିଲେ ।


ସେ ସରଳ ଗ୍ରାମବାସୀମାନଙ୍କ ମଧ୍ୟରେ ଆନନ୍ଦ ଅନୁଭବ କରୁଥିଲେ ।


ସେ ବିଜ୍ଞାନ ପ୍ରତି ଯଥେଷ୍ଟ ଆଗ୍ରହ ଦେଖାଉଥିଲେ ।


ଥରେ ସେ ଗୋଟିଏ ଶରଣାର୍ଥୀ ଶିବିର ପରିଦର୍ଶନ କରିଥିଲେ –
ସମ୍ପୃକ୍ତ ବିଭାଗ ଶିବିରର ପରିଷ୍କାର ପରିଚ୍ଛନ୍ନତା ଓ ଜଳ ଯୋଗାଣ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦେବା ଦରକାର ।
ତା’ ପରେ ସେ ବିଦେଶ ଯାତ୍ରା କରିଥିଲେ । ଦେଶକୁ ଫେରିଆସି ତାଙ୍କୁ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହିବାକୁ ପଡ଼ିଥିଲା ।


କିନ୍ତୁ ସେ ସେହି ଶରଣାର୍ଥୀ ଶିବିର କଥା ଭୁଲି ନ ଥିଲେ ।
ସେମାନେ ପରିଷ୍କାର ପରିଚ୍ଛନ୍ନତା ଓ ପାଣିର ଉପଯୁକ୍ତ ବ୍ୟବସ୍ଥା କରିଛନ୍ତି ତ ?


୩୭·ଜନତାର ପ୍ରିୟ ମଣିଷ
ଦରିଦ୍ରମାନଙ୍କ ପ୍ରତି ସମ୍ବେଦନଶୀଳ ଏହି ବ୍ୟକ୍ତିଙ୍କୁ ଲୋକେ ପୂଜା କରୁଥିଲେ
ବିନା ବସ୍ତ୍ର ଓ ଭୋକିଲା ପେଟରେ ବୁଲୁଥିବା ଆମର ପିଲାମାନଙ୍କୁ ଦେଖିଲେ ମୋର ହୃଦୟ ଦୁଃଖରେ ଜର୍ଜ୍ଜରିତ ହୁଏ ।


କି ବଳିଷ୍ଠ ବ୍ୟକ୍ତିତ୍ୱ—
ଯଥେଷ୍ଟ ସାମ୍ପ୍ରଦାୟିକ ଗଣ୍ଡଗୋଳ ହୋଇ ଯାଇଛି । ଆଉ ଏଣିକି ଏସବୁକୁ ବରଦାସ୍ତ କରାଯାଇପାରିବ ନାହିଁ।


କି ମର୍ମସ୍ପର୍ଶୀ ଆହ୍ୱାନ!
ସାହସୀ ଓ କର୍ମଶୀଳ ଲୋକମାନେ ସଫଳତା ଲାଭ କରନ୍ତି । ପରିଣତି ପାଇଁ ସର୍ବଦା ଭୟଭୀତ ଲୋକମାନେ କ୍ୱଚିତ ସଫଳତା ପ୍ରାପ୍ତ ହୋଇଥାନ୍ତି ।


କି ପ୍ରେରଣା—
ତୁମେ ହେଉଛ ଦେଶର ଯୁବଶକ୍ତି ।କିଛି ମହତ ଓ ବଡ଼ କାମ କରିବା ପାଇଁ ତୁମଠାରେ ଯୁବସୁଲଭ ଗରିମା ଓ ଆକାଙ୍କ୍ଷା ରହିବା ଉଚିତ
COLLEGE


ଦେଶବାସୀଙ୍କଠାରେ କି ଦାବି-
ଏ ପୁରୁଷର ଲୋକଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ିବ ଆରାମ ହେଉଛି ବଡ଼ ହାରାମ ।


ଏବଂ ତଥାପି, କି ପ୍ରଫୁଲ୍ଲ !

# ୩୮. ଚିନ୍ତା


ବେଳେବେଳେ ଲୋକମାନେ ଜାତୀୟ ଏକତା କଥା ଭୁଲି ଯାଇ ଛୋଟଖାଟ ବିଷୟଗୁଡ଼ିକୁ ନେଇ ଆନ୍ଦୋଳନ କରୁଥିବାରୁ ନେହରୁଙ୍କ ମନରେ ଦୁଃଖ ଜାତ ହୋଇଥିଲା ।
ଆମେ ଏକ ପୃଥକ ରାଜ୍ୟ ଚାହୁଁ ।


ତାଙ୍କୁ କେହି କେହି ଭୁଲ ମଧ୍ୟ ବୁଝୁଥିଲେ
ନେହରୁ ଧନୀ ଲୋକମାନଙ୍କୁ କୃପା ଦେଖାଉଛନ୍ତି ।
ନେହରୁଙ୍କ ସମାଜବାଦ ଆମ ବ୍ୟବସାୟର କ୍ଷତି ଘଟାଉଛି ।
Rs
କିନ୍ତୁ ସେ ସମାଲୋଚନାକୁ ଡରୁ ନ ଥିଲେ । ସେ ମତ ପ୍ରକାଶର ସ୍ୱାଧୀନତାକୁ ମୂଲ୍ୟବାନ ମଣୁଥିଲେ ଏବଂ ଲୋକମାନଙ୍କ ଉପରେ ତାଙ୍କର ବିଶ୍ୱାସ ଥିଲା ।


ବନ୍ୟା ପରି ଦୈବୀ ଦୁର୍ବିପାକ ଯୋଜନାଗୁଡ଼ିକ ଉପରକୁ ଆଞ୍ଚ ଆଣିଥିଲା ।


ଯନ୍ତ୍ରପାତି ଆମଦାନୀ କରିବା ପାଇଁ ଭାରତର ଯଥେଷ୍ଟ ବିଦେଶୀ ମୁଦ୍ରା ନ ଥିଲା ।
ଶିଳ୍ପର ପ୍ରଗତି ଘଟିବ କିପରି ?


ପାକିସ୍ତାନ ସହିତ ସମ୍ପର୍କ ଖରାପ ଆଡ଼କୁ ଗତି କରିବାରେ ଲାଗିଥିଲା ।
ଆମେ ନିଜକୁ ଭାଇ ଭାଇ ବୋଲି ବିଚାରିବା ଉଚିତ ।


ଦିନକୁଦିନ ବିଶ୍ରାମ ତାଙ୍କ ଜୀବନରେ ବିରଳ ହୋଇ ରହିଥିଲା
Disneyland


ଦେଶ ଚିନ୍ତା ସବୁବେଳେ ତାଙ୍କ ମନରେ ଥିଲା ।

## ୩୯. ଚୀନର ଆକ୍ରମଣ, ୧୯୬୨


















## ୪୦. ଅନ୍ତିମ ପର୍ଯ୍ୟାୟ









କେତେକ ମନ୍ତ୍ରୀ ସେମାନଙ୍କ ପଦ ଛାଡ଼ିଦେଲେ । ଲାଲ-ବାହାଦୁରଙ୍କୁ ପରେ ଫେରାଇ ଅଣାଗଲା




କବି ଠାକୁର ଯାହାଙ୍କୁ ଭାରତର "ଋତୁରାଜ" ଆଖ୍ୟା ଦେଇଥିଲେ, ତାଙ୍କଠାରେ ଦେଖାଦେଲା ବୟସର ଦାଗ ।



ଭୁବନେଶ୍ୱରଠାରେ ଏକ ବୈଠକ ସମୟରେ ସେ ହଠାତ ଅସୁସ୍ଥ ହୋଇ ପଡ଼ିଲେ ।

ନେହରୁଙ୍କର ଉତ୍ସାହ ଉଦ୍ଦୀପନା ଏଇ କବିତା ପଂକ୍ତିରେ (ଯାହାକୁ ସେ ଅନ୍ତିମ ଦିନରେ ଲେଖି ରଖିଥିଲେ) ପ୍ରତିବିମ୍ବିତ—




ସେ ଅବସନ୍ନତା ଅନୁଭବ କରୁଥିଲେ । କିନ୍ତୁ ସମୟ ନ ଥିଲା ବିଶ୍ରାମ ନେବାକୁ ।

କଂଗ୍ରେସର ବମ୍ବେ ଅଧିବେଶନରେ ସେ ଅତ୍ୟନ୍ତ କ୍ଲାନ୍ତ ଦେଖା ପଡ଼ୁଥିଲେ ।



ତଥାପି ସେ ତାଙ୍କ ସଂଗ୍ରାମ ଜାରି ରଖିଥିଲେ, କାରଣ ତାଙ୍କର ସ୍ୱପ୍ନର ଭାରତ ତଥାପି ଅନେକ ଦୂରରେ ରହିଥିଲା ।

## ୪୧. ମହାପ୍ରୟାଣ ୧୯୬୪


















ତାଙ୍କର ଅନ୍ତିମ ଦର୍ଶନ ପାଇବା ଲାଗି ଦେଶ ଓ ବିଦେଶର ନେତାମାନେ ଦିଲ୍ଲୀରେ ଆସି ପହଞ୍ଚିଲେ ।






ଏହି ବ୍ୟକ୍ତି ମାନବ ପ୍ରକୃତିରେ ଥିବା ଦୁଇଟି ବଡ଼ ଦୁର୍ବଳତାକୁ ଜୟ କରି ପାରିଛନ୍ତି । ଭୟ ବା ଘୃଣା କ'ଣ, ତାହା ସେ ଜାଣନ୍ତି ନାହିଁ ।

—ଉଇନଷ୍ଟନ ଚର୍ଚ୍ଚିଲ




ଶାନ୍ତି ବନରେ ନେହରୁଙ୍କର ଅନ୍ତିମ ସମାଧି

ଦୀର୍ଘ ୨୮ ବର୍ଷ କାଳ ସେ ନିଜ ପାଖରେ ସାଇତି ରଖିଥିବା ତାଙ୍କ ପ୍ରିୟତମା ପତ୍ନୀଙ୍କର ଚିତାଭସ୍ମକୁ ତାଙ୍କ ଚିତାଭସ୍ମ ସହିତ ରଖାଗଲା





ଜବାହରଲାଲ ନେହରୁ ହେଉଛନ୍ତି ସଂସାରର ମୁଷ୍ଟିମେୟ ସେହି କେଇଜଣ ମହାମାନବଙ୍କ ମଧ୍ୟରେ ଜଣେ, ଯେଉଁମାନେ ଜାତୀୟତା ଓ କାଳର ପରିସରକୁ ଅତିକ୍ରମ କରି ଯାଇଛନ୍ତି ଏବଂ ଚିରକାଳ ମାନବ ଜାତିର ଲକ୍ଷ୍ୟପଥକୁ ଉଦ୍ଭାସିତ କରୁଥିବେ ।

## ୪୩. ନେହେରୁ ଏବଂ ଭାରତ







ତାଙ୍କର ଏକମାତ୍ର ସ୍ୱପ୍ନ, ଏକମାତ୍ର ଭାବନା ଥିଲା ନିଜ ଦେଶବାସୀଙ୍କର କଲ୍ୟାଣ ସାଧନ କରିବା ଏବଂ ସେ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଏଥିପାଇଁ ସଂଗ୍ରାମ କରିଥିଲେ । ଏକଦା ସେ ଏକ ଅଦାଲତରେ କହିଥିଲେ—






ତାଙ୍କର ଉଦ୍ଦୀପନାମୟୀ ବାଣୀ, ଅକଥନୀୟ ଦୁଃଖ ବରଣ ଓ ଅକୁଣ୍ଠ ତ୍ୟାଗ ଭାରତବାସୀଙ୍କୁ ପ୍ରେରଣା ଦେଇଥିଲା ।



ଏହିପରି ଥିଲେ ଆମର ନେହରୁ ଦେଶ ପାଇଁ ତାଙ୍କର ପ୍ରେମ ଏତେ ଗଭୀର ଥିଲା ଯେ ସେ ତାଙ୍କ ଇଚ୍ଛା ପତ୍ରରେ ଲେଖି ଯାଇଥିଲେ—

...A handful of my ashes should be thrown in the Ganga and the major portion scattered from an aeroplane over the fields where the peasants of India toil, so that they might mingle with the dust and soil of India...

